# ଉତ୍କଳ କେଶରୀ ହରେକୃଷ୍ଣ ମହତାବ



ଲେଖକ :

ପ୍ରଫୁଲ୍ଲ କୁମାର ଦାଶ (ସବ୍ୟସାଚୀ)

ପ୍ରଥମ ମୁଦ୍ରଣ—୧୯୮୮




ପ୍ରକାଶକ - ଫୋନ:-୨୨୮୯୭, ୩୦୬୧୦

ସାରସ୍ୱତ ଭଣ୍ଡାର

ବାଲୁବଜାର, କଟକ-୨

ମୂଲ୍ୟ—ଟ ୪-୬୦

# Utkal Keshari Harekrushna Mahatab

Written by :

*Prafulla Kumar Das (Sabyasachi)*

1st Edition—1988

Published by :-

*Saraswata Bhandar*

Balu Bazar, Cuttack-2

Phone : 22897 & 30710

Price—Rs. 4·60 only




## ସୂଚୀପତ୍ର

ବିଷୟ ପୃଷ୍ଠା



—※—

# ମହତାବଙ୍କ ପୂର୍ବପୁରୁଷ ଓ ରାଜଗାଦି

ଦିଲ୍ଲୀର ବାଦଶାହ ଆକବରଙ୍କ ଶାସନ କାଳ । ତାଙ୍କ ମୋଗଲ ସେନା ବଙ୍ଗ, ବିହାର ଓ ଓଡ଼ିଶାକୁ ଆସିଥିଲେ । ପଞ୍ଜାବର କ୍ଷେତ୍ରି ଜାତି ସେତେବେଳେ ଏହି ସେନାଙ୍କୁ ଖାଦ୍ୟ ଆଦି ଯୋଗାଉ ଥିଲେ । ଏହି ଜାତିର କେତେକ ଏପରି ବେପାରକୁ ନିଜର ପେଷା କରିଥିଲେ । ତେଣୁ କ୍ଷେତ୍ରି ବେପାରୀ ସେନା ସହିତ ଓଡ଼ିଶାକୁ ଆସି ପାରିଥିଲେ ।



ସେମାନଙ୍କ ଭିତରେ ଅମୃତସରରୁ ଆସିଥିବା କ୍ଷେତ୍ରିୟ କେତେଜଣ ଓଡ଼ିଶାରେ ରହିଯାଇ ଥିଲେ । କେନ୍ଦୁଝର ଜିଲାରେ ଏବେ ଆନନ୍ଦପୁର ଏକ ସବ୍‌ଡିଭିଜନ । ତା' ଅଧୀନରେ ରହିଥିବା ଗଡ଼ସିଙ୍ଗିଡ଼ି ନାମକ ଏକ ଗାଁରେ କ୍ଷେତ୍ରି

କ୍ଷତ୍ରିୟମାନେ ରାଜ୍ୟ ଗଢ଼ି ରହିଥିଲେ । ସେତେବେଳର ସରକାର ତାଙ୍କୁ ତାହା ଜାଗିରୀ ସ୍ୱରୂପ ଦେଇଥିଲେ । ପରେ ସେମାନେ କେନ୍ଦୁଝର ରାଜ୍ୟରୁ ଖଣ୍ଡେ ମାଡ଼ି ବସି ରାଜା ବୋଲାଇ ଥିଲେ । ଏମାନେ ଛଅ ଭାଇ ଥିଲେ ।

କେନ୍ଦୁଝର ରାଜାଙ୍କ ସହିତ ଏମାନଙ୍କର ବିବାଦ ଘଟିଥିଲା । ଫଳରେ ଏମାନେ ସେ' ଇଲାକା ଛାଡ଼ି, ବାଲେଶ୍ୱରର ବନ୍ତ ଥାନା ଭିତରକୁ ଚାଲି ଆସିଥିଲେ । ସେଠାରେ ଅଗରପଡା ନାମକ ଏକ ଗାଁରେ ରହି ଗୋଟିଏ ଜମିଦାରୀର ମାଲିକ ହୋଇଥିଲେ । ଲୋକେ ତାଙ୍କୁ ରାଜା ବୋଲି ମାନୁଥିଲେ । ପରେ ଇଂରେଜ ଅମଳରେ ଏହା ଏକ ଛୋଟ ଜମିଦାରୀ ବୋଲାଇ ଥିଲା ।

ଅଗରପଡ଼ା ରାଜ ବଂଶରେ ଏମାନେ ଆଠ ଭାଇ ଥିଲେ । ବଡ଼ ହରନାମ ସିଂହ ରାଜା ହୋଇଥିଲେ । ସିଂହ ତାଙ୍କର ଉପାଧି ଥିଲା । ଶିଖ୍ ଜାତିର ଗୁରୁ ନାନକ ଏହି କ୍ଷେତ୍ରି ଜାତିର ଥିଲେ ଓ କ୍ଷେତ୍ରିମାନେ ତାଙ୍କୁ ମାନୁଥିଲେ ବି ପ୍ରକୃତରେ ଶିଖ୍ ନଥିଲେ । ଅଗରପଡ଼ାରେ ବହୁ କାଳରୁ ନାନକଙ୍କର ଏକ ଗାଦି ଥିଲା । ତାହାକୁ ଭାଇଜି ବାଡ଼ି କୁହା-ଯାଉଥିଲା । ପରେ ସେ ଗାଦିର ଜମିବାଡ଼ି ନିଲାମ ହୋଇ ଯାଇଥିଲା । ଫଳରେ ଏବେ ସେ ଗାଦି ଆଉ ନାହିଁ ।

ରାଜା ହରନାମ ସିଂହ ଜମିଦାରୀକୁ ବଢ଼ାଇ ଥିଲେ । ସେତେବେଳେ ସୂର୍ଯ୍ୟାସ୍ତ ଆଇନରେ ବଡ଼ ଛୋଟ ଜମିଦାରୀର ନିଲାମ ଘଟୁଥିଲା । ନିଲାମ ଡକା ଦିନ ସୂର୍ଯ୍ୟ ବୁଡ଼ିବା ଆଗରୁ ଯେଉଁ ଲୋକ ଟଙ୍କା ଭରି ପାରୁଥିଲା, ଜମିଦାରୀ ତା' ହାତକୁ

ଯାଉଥିଲା । ଏପରି ଆଇନ ଇଂରେଜମାନେ କରିଥିଲେ । କଲିକତାରେ ଓଡ଼ିଶାର ଜମିଦାରୀଗୁଡ଼ିକ ଖଜଣା ବାକି ଦୋଷରେ ନିଲାମ ହେଉଥିଲା । ବଙ୍ଗାଳିମାନେ ସହଜରେ ନିଲାମ ଧରି ରାତାରାତି ଜମିଦାର ହେଉଥିଲେ ।

ରାଜା ହରନାମ ୧୮୦୫ ମସିହାରେ ବୁଦ୍ଧିଲାଲ ଦତ୍ତ ନାମକ କଲିକତାର ଜଣେ ବଙ୍ଗାଳିଙ୍କ ଠାରୁ ଓଡ଼ିଶାର ଏକ ବଡ଼ ଜମିଦାରୀ କିଣିଥିଲେ । ଫଳରେ ଅଗରପଡ଼ାର ସାଧାରଣ ଜମିଦାର, ଜଣେ ରାଜା ବୋଲାଇ ପାରିଥିଲେ । ପ୍ରକୃତରେ ଏହିଠାରୁ ଅଗରପଡ଼ା ଜମିଦାରୀ ବା ରାଜ ବଂଶ ଆଖି ଦୃଶିଆ ହୋଇ ଉଠିଥିଲା ।

ହରନାମ ସିଂହ ନିଃସନ୍ତାନ ଥିଲେ । ତେଣୁ ଖେଲାଓନ୍ ସିଂହ ତାଙ୍କର ପୋଷ୍ୟ ପୁଅ ଭାବେ ରାଜା ହୋଇଥିଲେ । ହରନାମଙ୍କ ଚିତାରେ ତାଙ୍କର ରାଣୀ ଝାସ ଦେଇ ସତୀ ହୋଇଥିଲେ । ଫଳରେ ଖେଲାଓନ୍ ସେଠାରେ ସତୀ ଦେଉଳ ତୋଳାଇ ଥିଲେ । ତାହା ଏବେବି ଲୋକ ମେଳରେ ଜଣାଶୁଣା ।

ଖେଲାଓନ୍‌ଙ୍କ ପୁଅ ମରିଯିବା ପରେ, ସେ ନିଜର ଭାଇଙ୍କ ନାତି ରାମଚନ୍ଦ୍ର ସିଂହ ଓ ମାନସିଂହଙ୍କ ନାଁରେ ଜମିଦାରୀକୁ ଲେଖି ଦେଇଥିଲେ । କିନ୍ତୁ ଦୁହେଁ ଯାକ ନିଃସନ୍ତାନ ହୋଇଥିଲେ । ଫଳରେ ନିଜ ଜମିଦାରୀ ଆଡ଼କୁ ଲୋଭ ରଖି ପାରି ନ ଥିଲେ । ହରନାମ ସିଂହଙ୍କ ବରିଷ୍ଠ ଝିଲ୍ଲିକା କ୍ରମେ ଭାଗ ବଣ୍ଟୁଆରା ଓ ବର୍ଦ୍ଧୀରେ ଛୋଟ ହୋଇ

ପଡ଼ୁଥିଲା । ଇଂରେଜ ରାଜୁତ୍ୱରେ ଅଗରପଡ଼ା ଏକ ସାଧାରଣ ରାଜକ ଜମିଦାରୀ ବୋଲାଇ ଥିଲା । ତଥାପି ଲୋକେ ଜମିଦାରଙ୍କୁ ରାଜା ବୋଲି ଡ଼ାକୁଥିଲେ ।

ମାନସିଂହ ଓ ରମେଚନ୍ଦ୍ର ସିଂହଙ୍କର କାଳ ହୋଇ ଯାଇଥିଲା । ରାଜା ରାମଚନ୍ଦ୍ରଙ୍କର ଇଛାଥିଲା ଭଣଜା ଜଗନ୍ନାଥ ମହନ୍ତାବଙ୍କୁ ପୋଷ୍ୟପୁଅ କରିବେ । ତେଣୁ ଜଗନ୍ନାଥ ଅଗରପଡାର ଜମିଦାର ହୋଇଥିଲେ । ପୋଷ୍ୟପିତା ରାମଚନ୍ଦ୍ରଙ୍କ ଲେଖା ଅନୁସାରେ, ସବୁ ଜମିବାଡ଼ି, ସମ୍ପତ୍ତି ଆଦି ଭୋଗ କରିଥିଲେ ।

ଏହି କ୍ଷତ୍ରିୟ ମାନଙ୍କର ସଂଖ୍ୟା ଅଧିକ ନଥିଲା । ତେଣୁ ପୁଅ-ଝିଅ ବାହାଘର ବଡ଼ ଜଟିଳ ହୋଇ ପଡୁଥିଲା । ତଥାପି ନିଜ ଭିତରେ କୌଣସି ମତେ ନିର୍ମିତ କାମ ଉଠି ଯାଉଥିଲା । ଏବେ ମଧ୍ୟ ଏମାନଙ୍କ ସଂଖ୍ୟା ଦୁଇଶହ ବା ଅଳ୍ପ ଅଧିକ ହେବ । ଜଗନ୍ନାଥ ମହନ୍ତାବଙ୍କର ପୁଅ ନ ଥିଲେ । ( ତାହପା ବା ତୋପେଇ ବବ ନାମକ ଝିଅଟିଏ ଥିଲା । ତା' ପାଇଁ ବରପାତ୍ର ଯୋଗାଡ଼ରେ ବିଳମ୍ବ ଘଟି ନ ଥିଲା । କଟକ ଜିଲ୍ଲା ଅସୁରେଶ୍ୱର ଗ୍ରାମର କୃଷ୍ଣଚରଣ ଦହଙ୍କ ସହ ବିବାହ ଘଟିଥିଲା ।

ନିଃସନ୍ତାନ ଦୋଷରେ ପଡ଼ି ନ ଥିବା ରାଜା ଜଗନ୍ନାଥ ମହନ୍ତାବ, ଝିଅ ଜ୍ୱାଇଁଙ୍କୁ ନିଜ ପାଖରେ ରଖିଥିଲେ । ନାତି ହେଲେ, ତାକୁ ପୁଅ କରିବାର ଇଛା ମନରେ ପୋଷିଥିଲେ । କୃଷ୍ଣଚରଣ ଶିକ୍ଷିତ ନ ହୋଇ ବି ଜମିଦାରୀର ଅନେକ କାମ

ବୁଝୁଥିଲେ । ସେ ଘରଜୋଇଁଆ ହୋଇ ବ ଜମିଦାରୀର ମାଲିକ ହୋଇ ନ ଥିଲେ । କିନ୍ତୁ କାମ ଭଲରେ ଚାଲିଥିଲା ।

ତୋହଫାଙ୍କ ଗର୍ଭରୁ ଦ୍ୱିତୀୟ ପୁତ୍ର ରୂପେ ତା ୨୧-୧୧-୧୮୯୯ ଖରେ ହରେକୃଷ୍ଣ ଜନ୍ମ ହୋଇଥିଲେ । ସେଦିନ ତାଙ୍କର ଅଜା ଜଗନ୍ନାଥ ପାଟପୁର ଗାଁ ଜମିଦାରୀରେ ଥିଲେ । ସେତେବେଳକୁ ସେ ପୀଡ଼ିତ ରହୁଥାନ୍ତି । ତେଣୁ ଆଉ ଅପେକ୍ଷା ନ କରି, ହାତୀ ଚଢ଼ି ଚାଲି ଆସିଥିଲେ । ନାତି ହରେକୃଷ୍ଣଙ୍କୁ ନାଡଫୁଲ ସହ ପୋଷ୍ୟ ପୁଅ ଭାବେ ଗ୍ରହଣ କରି ନେଇଥିଲେ ।

ହରେକୃଷ୍ଣ ମହତାବଙ୍କୁ ସାତମାସ ହୋଇଥିବା ବେଳେ ଅଜା ଜଗନ୍ନାଥ ଅଧିକ ପୀଡ଼ିତ ହୋଇ ପଡ଼ିଲେ । ତେଣୁ ଜମିଦାରୀର କାଗଜପତ୍ର ଏହି ନ ବାଳକ ନାତି ନାଁରେ କରି



ମରଣକୁ ଅପେକ୍ଷା କଲେ । ମହତାବଙ୍କୁ ଦଶମାସ ବେଳେ ସେ ଆଖି ବୁଜିଲେ । ଫଳରେ କୃଷ୍ଣଚରଣ ଦାସଙ୍କୁ

ଜମିଦାରୀର ସବୁ କାମ ମ୍ୟାନେଜର ଭାବେ ବୁଝିବାକୁ ପଡ଼ୁଥିଲା । କିନ୍ତୁ ଆଇନ ଅନୁସାରେ ଜଗନ୍ନାଥଙ୍କ ବିଧବା ରାଣୀ ଧନ୍ନୁବିବି ହରେକୃଷ୍ଣଙ୍କର ମହାର୍ଫିସ୍ ହୋଇଥିଲେ ।

କୃଷ୍ଣଚରଣ ଦାସ ଆଧୁନିକ ଶିକ୍ଷା ପାଇ ନ ଥିଲେ ବି ଶିକ୍ଷା ପ୍ରେମୀ ଥିଲେ । ତେଣୁ ଗାଁର ଛୋଟ ଚାଟଶାଳୀଟି ତାଙ୍କ ଚେଷ୍ଟାରେ ପ୍ରଥମେ ନିମ୍ନ ପ୍ରାଥମିକ ହୋଇ, ପରେ ମଧ୍ୟ ଇଂରାଜୀ ହୋଇ ପାରିଥିଲା । ଗାଁରେ ଡାକ ଘରଟି ମଧ୍ୟ ତାଙ୍କରି ଉଦ୍ୟମରେ ବସିପାରିଥିଲା । ଉପର ହାକିମ ମାନଙ୍କ ସହ ସେ' ଭଲରେ ମିଶି ପାରୁଥିଲେ । ତେଣୁ ଜିଲ୍ଲାପାଳ ଇଜର୍ଟନ୍ ସାହେବ ତାଙ୍କୁ ବଡ ମାଜିଷ୍ଟ୍ରେଟ୍ କରିବା ପାଇଁ ଚାହୁଁଥିଲେ । କିନ୍ତୁ କୃଷ୍ଣଚରଣ ନିଜ ସୀମା ବୁଝି ମନା କରିଥିଲେ ।

— —

## ପିଲାଦିନ ଓ ପଢ଼ାପଢ଼ି

ମହତାବଙ୍କର ଜନ୍ମବେଳେ ସାତଟି ଗ୍ରହ ଏକାଠି ଥିଲେ । ତେଣୁ ତାଙ୍କ ଜାତକ ଖୁବ୍ ବଳୁଆ ଥିଲା ବୋଲି କୁହାଯାଉଥିଲା । ମହତାବ ଓ ତାଙ୍କ ବଡ଼ଭାଇ ନରସିଂହ ଚରଣ ଦାସ ପ୍ରଥମେ ଗାଁ ଚାଟଶାଳୀରେ ପଢିଥିଲେ । ଚାଟଶାଳୀଟି ତା'ପରେ ପରେ ଉଚ୍ଚ ପ୍ରାଥମିକ ହୋଇଥିଲା । ତେଣୁ ଉଭୟେ ତହିଁରେ ପଢ଼ିଥିଲେ ।

ସ୍କୁଲରେ ଇଂରେଜୀ ପାଠ ନଥିଲା । ତେଣୁ କୃଷ୍ଣ-ଚରଣ ପୁଅ ଦୁହିଁଙ୍କ ପାଇଁ କୃପାସିନ୍ଧୁ ମହାନ୍ତିଙ୍କୁ ଇଂରାଜୀ ଶିକ୍ଷକ ଭାବେ ରଖିଥିଲେ । ଏହି ସମୟରେ ମହତାବ ରାମାୟଣ କଥାକୁ ପଦ୍ୟ ଆକାରରେ ରଚନା କରିଥିଲେ ।

ଗାଁ ପାଠ ସାରି ଦୁଇ ଭାଇ ଭଦ୍ରଖ ହାଇସ୍କୁଲରେ ନାଁ ଲେଖାଇଥିଲେ । ତେଣୁ ଏକ ବସାଘର ନେବାକୁ ପଡ଼ି-ଥିଲା । ତାଙ୍କ ସହ ଗାଁର ଆଉ ଦୁଇ ଜଣ ପିଲାଙ୍କୁ ପଠାଇ କୃଷ୍ଣ ଚରଣ ସମସ୍ତଙ୍କ ଖର୍ଚ୍ଚ ତୁଲାଇ ଥିଲେ । ଏମାନଙ୍କ ପାଇଁ ବିଷ୍ଣୁ ଚରଣ ପାଣିଗ୍ରାହୀ ନାମକ ଜଣେ ଗାଁ ଶିକ୍ଷକ ମୁରବି ହୋଇଥିଲେ । ଏହି ମୁରବି ପିଲାଙ୍କର ଦରକାରୀ ଖର୍ଚ୍ଚ କରି ପିଲାଙ୍କୁ ଚଲାଉ ଥିଲେ । ଫଳରେ ପିଲାଙ୍କ ହାତରେ ପଇସା-ଟିଏ ବି ପଡ଼ୁ ନଥିଲା ।

ଅନ୍ୟ ପିଲାମାନେ ହାତରେ ପଇସା ଖର୍ଚ୍ଚ କରି ଖୁସିରେ ଥିଲେ । ତାହା ଦେଖି ଦେଖି ମହତାବଙ୍କୁ ବିରକ୍ତି ଆସି ଯାଇଥିଲା । ତେଣୁ ସେଥିରେ ଗାଁକୁ ଫେରି ମା'ଙ୍କ ଆଗରେ ମିଛରେ କହିଥିଲେ ଯେ ମୁରବି ତାଙ୍କର ନିଜ ପାଇଁ ପଇସା ଉଡ଼ାଇ ତାଙ୍କୁ ଖାଇବା ପିଇବାରେ ହଇରାଣ କରୁ-ଛନ୍ତି । ଏପରି ଯଦି ଆଉ କିଛି ଦିନ ଚାଲେ, ତେବେ ସେମାନେ ଖାଇବା ଦରଗ୍ରେଟରେ ମରିଯିବେ ।

ଏକଥା କୃଷ୍ଣଚରଣଙ୍କ କାନରେ ପଡ଼ିଥିଲା । ସେ' ବୁଦ୍ଧି ପାରି କଥାକୁ ଏଡ଼େଇ ଦେଇଥିଲେ । ତାଙ୍କ ମତରେ ପିଲାଙ୍କ ହାତକୁ ପଇସା ଗଲେ, ପିଲେ ବଦ ଖର୍ଚ୍ଚ କରି ଅମଣିଷ ହୋଇଯିବେ । ମହତାବଙ୍କର ମିଛ କହିବାରେ

କିଛି ଲାଭ ଘଟି ନଥିଲା । ତାଙ୍କୁ ସେପରି ଭାବେ ଭଦ୍ରଖରେ ପାଞ୍ଚବର୍ଷ କଟାଇ ପଢ଼ା ସାରିବାକୁ ପଡ଼ିଥିଲା ।

ତେର ବର୍ଷ ବୟସରେ ମହତାବ ଭଦ୍ରଖ ଯାଇ ରହିଥିଲେ । କଡ଼ାକଡ଼ି ନିୟମରେ ଚଳିବାରୁ ବାଳ୍ୟସପୂର୍ଣ୍ଣ ଜୀବନ ସହ ତାଙ୍କର ଭେଟାଭେଟି ଘଟି ନଥିଲା । ଏହି ଅଭ୍ୟାସ ତାଙ୍କୁ ଭବିଷ୍ୟତରେ ଭଲ ଫଳ ଦେଇଥିଲା । କିନ୍ତୁ ଅପରିଚିତଙ୍କ ସହ ଶୀଘ୍ର ମିଶି ପାରିବା ଗୁଣଟି ହେ ପାଇ ନଥିଲେ । ଏହି ଅଭ୍ୟାସଟିର ଅଭାବ, ଆଗକୁ ତାଙ୍କୁ ଅସୁବିଧାରେ ପକାଇଥିଲା ।

ମହାତାବ ଭଲ ଛାତ୍ରଥିଲେ । ଇଂରେଜୀ, ଗଣିତ, ସଂସ୍କୃତ ଆଦି ପାଠରେ ସେ' ପ୍ରଥମ ବା ଦ୍ୱିତୀୟ ହେଉଥିଲେ । ସ୍କୁଲର ବଙ୍ଗାଳି ଶିକ୍ଷକମାନେ ତାଙ୍କୁ ଖୁବ୍ ଭଲ ପାଉଥିଲେ । ସେତେବେଳେ ଉତ୍କଳ ସମ୍ମିଳନୀର ପ୍ରଚାର କାମ ଅନନ୍ତ ମିଶ୍ର କରୁଥିଲେ । କଟକରେ ଏବେ ସୁଦ୍ଧା ତାଙ୍କର ଏକ ବହି ଦୋକାନ ଅଛି । ଅନନ୍ତ ମିଶ୍ର ଯେତେବେଳେ ଭଦ୍ରଖ ଆସିଥିଲେ, ତାଙ୍କ ବକ୍ତୃତାର ଆୟୋଜନ ମହତାବ କରାଇଥିଲେ । ସ୍କୁଲ୍ ସଂପାଦକ ଏଥିରେ ବାଧା ଦେବାରୁ, ପ୍ରଧାନ ଶିକ୍ଷକ ମହତାବଙ୍କ ତରଫ ହୋଇ ସଭା କରାଇବାକୁ ଅନୁମତି ଦେଇଥିଲେ ।

ଏଥିରୁ ମହତାବଙ୍କ ସାହସ କଥା ଜଣାପଡେ । ଆଉଥରେ ସେ' ଜଣେ ସହପାଠୀ ସହ ଭଦ୍ରଖ ରେଲଷ୍ଟେସନ୍ ଠାରୁ କମିଶନରଙ୍କ ଆଗେ ଆଗେ ସାଇକେଲ୍ ଚଳାଇଥିଲେ । ଫଳରେ ସାହେବ ପହଞ୍ଚିବାରେ ଡେରି ହୋଇ-

ଥିଲା । ପୋଲିସ ଧମକାଇଲେ ବି ମହତାବ ଶୁଣି ନଥିଲେ । ଏକଥା ପ୍ରଧାନ ଶିକ୍ଷକଙ୍କ କାନକୁ ଯାଇଥିଲା । ସେ' ମହତାବଙ୍କୁ ତାଙ୍କ ସାହସ ପାଇଁ ସାବାସି ଦେଇଥିଲେ ।

ଆଉ ଥରେ ଭଦ୍ରକରେ ଏକ ସଭାରେ ପୋଲିସ ଜଣେ ଛାତ୍ରକୁ ଅସମ୍ମାନିତ କରିଥିଲା । ପରିଣାମରେ ମହତାବଙ୍କ ଦଳ ପୋଲିସକୁ ପିଟିପିଟି ଘଉଡ଼ାଇ ଦେଇଥିଲେ । ସେଥର ମଧ୍ୟ ପ୍ରଧାନ ଶିକ୍ଷକ ତାଙ୍କୁ ଓ ଅନ୍ୟ ଛାତ୍ରକୁ ନିଜର କୌଶଳରେ ରକ୍ଷା କରିଥିଲେ ।

ଭଦ୍ରଖ ପଢ଼ାବେଳେ ସେ' ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଥିଲା । ରାମକୃଷ୍ଣ ମିସନ ତରଫରୁ ଜଣେ କର୍ମୀ ଆସି



ଅନ୍ନଛତ୍ର ଖୋଲାଇଥିଲେ । ତାଙ୍କଠାରୁ ମହତାବ ଖଣ୍ଡିଏ ବହି ପାଇଥିଲେ । ସେ'ସବୁ ପଢି ସେ' ରାମକୃଷ୍ଣ ଓ ବିବେକାନନ୍ଦଙ୍କ

ଜାଣି ତଳ ପଢ଼ିଥିଲେ । ସେ' ଦୁହିଁଙ୍କ ଆଦର୍ଶରେ ନିଜକୁ ଗଢ଼ିବାକୁ ପାଦ ଉଠାଇଥିଲେ ।

ଭଦ୍ରଖ ପଢ଼ା ବେଳେ ମହତାବଙ୍କର ମା' ମରିଗଲେ । ତେଣୁ ମହତାବ ଓ ତାଙ୍କ ବାପା ଭାଙ୍ଗି ପଡ଼ିଲେ । ମହତାବଙ୍କ ତଳେ ଆଉ ଦୁଇଟି ଭାଇ ଥିଲେ । କୃଷ୍ଣଚରଣଙ୍କର ବାକି ପୁଅ ତିନୋଟିଙ୍କ ପାଇଁ ଚିନ୍ତା ବଢ଼ିଥିଲା । ସେମାନଙ୍କ ଅଭିଥାନ ଓ ମହତାବଙ୍କ ଗୃହସ୍ଥୀ ପାଇଁ ସେ ନିଜକୁ ତ୍ରାଣ କଲେ । ଇଚ୍ଛା ଥାଇ ବି ବୈରାଗୀ ହେବାର ବେଳ ନଥିଲା । ତେଣୁ ସେ ସ୍ତ୍ରୀ ବିୟୋଗ ପାଶୋରି ଜମିଦାରୀ ଉପରେ ନିଘା ରଖିଲେ ।

ମା' ମରିବା ବେଳକୁ ହାଇସ୍କୁଲ ପଢ଼ା କିଛି ମାସ ପରେ ସରିବା ଭଳି ହୋଇଥିଲା । ମା'କଥା ଭାଳି ବସିଲେ ପଢ଼ା ଖରାପ ହେବ । ଗଲା ଲୋକ ଆଉ କ'ଣ ଫେରିବ । ରାମକୃଷ୍ଣ ଓ ବିବେକାନନ୍ଦଙ୍କ ବାଣୀ ମହତାବଙ୍କୁ ସ୍ଥିର ରଖିଲା । କୌଣସି ପ୍ରକାରେ ଭଦ୍ରଖର ବାକି କେତେ ମାସ ପଢ଼ା ସାରି ମାଟ୍ରିକ ପରୀକ୍ଷା ଦେବାକୁ ସେ' ମନ ଦେଲେ ।

———

# ବିବାହ ଓ ପାଠପଢା

ମାଟ୍ରିକ୍ ପରୀକ୍ଷା ମୁଣ୍ଡ ଉପରେ । ଏହି ସମୟରେ ହରେକୃଷ୍ଣଙ୍କ ବିବାହ ଦେବାକୁ ସଭିଏଁ ଲାଗି ପଡ଼ିଲେ । କଟକ ଜିଲ୍ଲା ଅସୁରେଶ୍ୱର ଗାଁର ଆନନ୍ଦରାମ ସିଂହଙ୍କ କନ୍ୟା ସୁଭଦ୍ରାଙ୍କ ସହ ମହତାବଙ୍କର ହାତଗଣ୍ଠି ପଡ଼ିବା ସ୍ଥିର ହେଲା । ମହତାବ ନିଜର ଇଚ୍ଛା ନଥାଇ ବି ବାଧ୍ୟ ବାଧକତାରେ ରାଜି ହୋଇଥିଲେ ।

ମହତାବଙ୍କୁ ୧୭ ବର୍ଷ ବୟସରେ ପ୍ରାପ୍ତବୟସ୍କା ସୁଭଦ୍ରା ତାଙ୍କ ଜୀବନ ପରିଧି ଭିତରକୁ ଆସିଲେ ! ୧୯୧୭ ମସିହାର ଏହି ଘଟଣା । ସେ' ବର୍ଷ ମହତାବ ପରୀକ୍ଷା ଦେଲେ ଓ ପ୍ରଥମଶ୍ରେଣୀ ପାଶ କଲେ । ତା'ପରେ ତିନି ଚାରି ମାସ ଜମିଦାରୀ ବୁଝିଥିଲେ ଓ ତା'ପରେ କିଛି ସଙ୍ଗୀତ ବିଦ୍ୟା ବି ଶିଖିଥିଲେ । ସେତେବେଳେ ସଙ୍ଗୀତ ଶିଖି ସଂକୀର୍ତ୍ତନ କରିବା, ତାଙ୍କ ବଂଶର ନୀତି ଥିଲା ।

ମେଟ୍ରିକ ପରେ କଲେଜ୍ ପଢା ପାଇଁ ତାଙ୍କ ବାପା ରାଜି ନ ଥିଲେ । କିନ୍ତୁ ମହତାବ ଜିଦ୍ ଧରିଲେ-କଟକ ଯାଇ ରେଭେନ୍ସା କଲେଜରେ ପଢିବେ । ଟାଳଟୁଳ ଭିତରେ ମହତାବଙ୍କ ଜିଦ୍ ରହିଲା । ବାପା ତାଙ୍କର ଭାବିଲେ-ପୁଅ

ପଢ଼ୁ । ଭଲ ଇଂରେଜୀ ପାଠ ଶିଖି କେଉଁ ଅବା ଚାକିରୀ କରୁଛି । ପାଠ ଶେଷ କରି ଆସିଲେ ଜମିଦାରୀ ବୁଝିବ । ଶିକ୍ଷିତ ଜମିଦାର ବୋଲି ଇଜ୍ଜତ ପାଇବ ।

ଜମିଦାର ଘରର ପୁଅ ପ୍ରବାସରେ ରହି ପାଠ ପଢ଼ିବ । ପାଖରେ ଚାକରଟିଏ ରହିବା ନିହାତି ଦରକାର । ପୁଅର କୋଡ଼ିଏ ଏବଂ ଚାକର ପାଇଁ ଦଶ, ଏ'ପରି ମାସକୁ ତିରିଶ ଟଙ୍କା ଲୋଡ଼ା । ତେଣୁ ନଗଦ ପଚିଶ ଟଙ୍କା ଦେଇ ଗୋଟିଏ ଚାକର ସହ ମହତାବଙ୍କୁ ପଠାଗଲା । ସବାରିରେ ବସି ମହତାବ ରେଲ ଷ୍ଟେସନକୁ ଗଲେ । ବାଟରେ ତାଙ୍କ ଜମିଦାରୀ ଗାଁ ଗୁଡ଼ିକର ଲୋକେ ରାଜା ଆସିଛନ୍ତି ବୋଲି ପଇସାପତ୍ର ଭେଟି ଦେଲେ । ସେତେବେଳେ ଭେଟିକୁ ସଲାମି କୁହାଯାଉଥିଲା ।

ବାପା ଦେଇଥିବା ଟଙ୍କା ସହ ସଲାମି ବାବଦ ଦେଢ଼ଶହରୁ ଦୁଇଶହ ଭିତରେ ଟଙ୍କାଧରି ମହତାବ କଟକ ଆସିଥିଲେ । କଟକରେ ଭଦ୍ରକ୍ଷ ପଟର ପିଲାମାନେ ଏକ ଛୋଟ ଛାତ୍ରାବାସ କରି ରହୁଥିଲେ । ସେଇଠାରେ ମହତାବ ରହି ରେଭେନସା କଲେଜର ଆଇ ଏସ୍‌ସି ଶ୍ରେଣୀରେ ନାଁ ଲେଖାଇ ଥିଲେ । କଲେଜ୍ ପଢ଼ାବେଳେ ସେ କେତେକ ନେତାଙ୍କ ଚିହ୍ନି ସେମାନଙ୍କ ସହ ମିଶି ଥିଲେ ।

ଏହି ସମୟରୁ ମହତାବଙ୍କର ସଙ୍ଗଠନ କାମ ଆରମ୍ଭ ହୋଇଥିଲା । ସେ କେତେକ ଛାତ୍ରଙ୍କୁ ଏକାଠି କରି ଦଳଟିଏ ଗଢ଼ିଥିଲେ । ଏହି ଦଳଟି ନିଜକୁ ସ୍ୱାଧୀନ ଚିନ୍ତା କରୁଥିବା ଛାତ୍ର ବୋଲି ଭାବୁଥିଲେ । ଏମାନେ ନିଡରୁଆ ଥିଲେ । ତାଙ୍କ

ଗତବର୍ଷଧିକୁ ଦେଖି କିଏ କଣ ଭାବୁଛନ୍ତି କ କହୁଛନ୍ତି ଖାତର କରୁ ନଥିଲେ ।

ମେସରେ ଥିବ ବେଳେ ମହତାବ ଲେଖାଲେଖି ଆଡ଼କୁ ଢଳ ଥିଲେ । ତେଣୁ ଓଡ଼ିଆରେ 'ମଳୟ' ଓ ଇଂରେଜୀରେ 'ଡଷ୍ଟବିନ୍' ନାମକ ଦୁଇଟି ହାତଲେଖା ପତ୍ରିକା କାଢିଥିଲେ । ମହତାବ ନଂର ପଢା ଆଡ଼କୁ ଅଧିକ ନଜର ଦେଇ ନଥିଲେ । ପରୀକ୍ଷା ବେଳକୁ ପନ୍ଦରଟି ଦିନ ପଢି



ଆଇ ଏସ୍ ସି ପାଶ୍ କରି, ତାପରେ ବି ଏ. ପଢିଥିଲେ । ଏହି ସମୟରେ ସେ' ପୋଲିସ ବା ସରକାରୀ ଅମଲାଙ୍କ ଜୁଲମ ଦେଖିଲେ ଇଂରେଜୀରେ ସମ୍ବାଦ ଲେଖି 'ଉତ୍କଳ ଦୀପିକା' ପତ୍ରିକାକୁ ଦେଉଥିଲେ ।

କଟକର ଏକ ସେବାସମିତିରେ ମହତାବ ମିଶି ଥିଲେ । ୧୯୧୮ ମସିହାରେ ଉତ୍କଳ ସମ୍ମିଳନୀର ଏକ ସଭାରେ ସେ

ଜଣେ ସ୍ୱେଚ୍ଛାସେବକ ହୋଇଥିଲେ । ଏହି ସମ୍ମିଳନୀ ଓଡ଼ିଶାକୁ ଏକ କରିବାର ଲକ୍ଷ୍ୟ ରଖିଥିଲା । ମଧୁବାବୁ ଏହାର ବଡ଼ନେତା ଥିଲେ ।

୧୯୧୯-୨୦ ମସିହାରେ କଟକର ବାଖରାବାଦଠାରେ 'ଭାରତୀ ମନ୍ଦିର' ନାମକ ପାଠାଗାରଟିଏ ଥିଲେ । କେତେକ ବଡ ନେତା ତାହାର ପରିଚାଳକ ଥିଲେ । ଏହିଠାରୁ ତାଙ୍କର ରାଜନୀତି ଜୀବନର ମିଅଁ ପଡ଼ିଥିଲା ବୋଲି କହିବାକୁ ହେବ । କଲିକତାରେ ଏହି ସମୟରେ କଂଗ୍ରେସର ସଭା ବସିଥିଲା । ସେଠାରେ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ଉପରେ ଆଲୋଚନା ହୋଇଥିଲା ।

'ଭାରତ ମନ୍ଦିର' ତରଫରୁ ହରେକୃଷ୍ଣଙ୍କୁ କଲିକତାର ଏହି ସଭାରେ ଯୋଗ ଦେବାକୁ ପଠାଯାଇଥିଲା । ମହତାବ ବାପାଙ୍କୁ ଠକି ଶହେ ଟଙ୍କା ସଂଗ୍ରହ କରିଥିଲେ । କଲିକତା ଯିବା, ରହିବା ଓ ଫେରିବାରେ ଏହି ପଇସାରୁ କିଛି ଖର୍ଚ୍ଚ ହୋଇଥିଲା । ଏହା ପରଠାରୁ ତାଙ୍କର ସ୍କୁଲ କଲେଜରେ ଅଖି ଦୃଶିଆ ହୋଇ ପାରିଥିଲା । ଏହାପରେ କଂଗ୍ରେସର ସଭା ନାଗପୁରରେ ବସିଥିଲା । ସେ ସେଠାକୁ ବି ଯାଇଥିଲେ । ସେଠାରେ ତାଙ୍କର ଉତ୍କଳମଣି ଗୋପବନ୍ଧୁଙ୍କ ସହ ପରିଚୟ ଘଟିଥିଲା ।

ନାଗପୁର କଂଗ୍ରେସ ସଭାରେ ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନକୁ ସମସ୍ତେ ମାନି ନେଇଥିଲେ । ଏହି ଆନ୍ଦୋଳନ ଓଡ଼ିଶାରେ ବି ପଶିଥିଲା । ତେଣୁ ଗାନ୍ଧୀଙ୍କ ପତାକା ତଳକୁ ଯିବାପାଇଁ ମହତାବ ନିଜର ପଢ଼ା ଛାଡ଼ିଥିଲେ । ଇଂରେଜ

ସରକାରଙ୍କର ସବୁ ଜିନିଷ ଛାଡ଼ି, ତାଙ୍କୁ ସହଯୋଗ ନ ଦେବା ଏହି ଆନ୍ଦୋଳନର ମୂଳ କଥା ଥିଲା । ଏହା ଯୋଗେ ଇଂରେଜ ସରକାର ଅଚଳ ହୋଇଯିବେ । ଫଳରେ ପେଡ଼ି-ପୁଟୁଳା ଧରି ନିଜ ଦେଶକୁ ବାହୁଡ଼ିବାକୁ ବାଧ୍ୟ ହେବେ ।

ତେଣୁ ଭାରତର ଲୋକେ ବିଦେଶୀ ଜିନିଷ ପରିତ୍ୟାଗ କରୁଥିଲେ । ସରକାର ତଳେ ଚାକିରୀ କରୁଥିବା ଲୋକେ ଚାକିରୀ ଛାଡ଼ୁଥିଲେ । ଇଂରେଜୀ ଶିକ୍ଷା ପାଉଥିବା ଛାତ୍ରମାନେ ଶିକ୍ଷା ବି ଛାଡ଼ି ଦେଉଥିଲେ । ସମସ୍ତଙ୍କର ଲକ୍ଷ୍ୟ ଥିଲା ଭାରତର ସ୍ୱାଧୀନତା ।

***

## ପ୍ରଥମ କଂଗ୍ରେସ ଆନ୍ଦୋଳନ

ନାଗପୁର କଂଗ୍ରେସ ସଭାର ଅସହଯୋଗ ଆନ୍ଦୋଳନ ନିଷ୍ପତ୍ତି ବେଳକୁ ଓଡ଼ିଶାରେ ମଧୁସୂଦନ ଦାସ ମନ୍ତ୍ରୀ ପଦ ପାଇଥା'ନ୍ତି । ଏହି ପଦ ଗ୍ରହଣ କରିବା କଂଗ୍ରେସ ଆନ୍ଦୋଳନର ଖିଲାପ ଥିଲା । କିନ୍ତୁ କଟକରେ ମଧୁବାବୁଙ୍କୁ ସମ୍ବର୍ଦ୍ଧନା ଜଣାଇଁବାକୁ କେତେକ ଲୋକ ଏକ ସଭାରେ ଆୟୋଜନ

କରିଥିଲେ । ସେହି ସଭାରେ ମଧୁବାବୁଙ୍କ ନିନ୍ଦାଗାନ କରାଇବାକୁ ହରେକୃଷ୍ଣ ଲାଗିପଡ଼ିଲେ ।

ଫଳରେ ସଭା ହେଲା ଓ ହରେକୃଷ୍ଣଙ୍କ ଦଳ ସଭାରେ ମୁଖିଆ ଆସନ ମାଡ଼ିବସି ମଧୁବାବୁଙ୍କର ସମ୍ବର୍ଦ୍ଧନା ବଦଳରେ ନିନ୍ଦା ଆରମ୍ଭ କରିଦେଲେ । ସେହି ସଭାରେ କଂଗ୍ରେସର ଓଡ଼ିଶା ପାଇଁ ପ୍ରାଦେଶିକ କମିଟି ମଧ୍ୟ ଗଢାଗଲା । ଗୋପବନ୍ଧୁଙ୍କ ଏହାର ସଭାପତି କରାଗଲା । ମହତାବ ଜଣେ ସଭ୍ୟ ହେଲେ ।

ଏହିପରି ଘଟଣାରେ ମହତାବଙ୍କର ପଢା ଛାଡ଼ିଦେବା ଦେଖାଗଲା । ଏପରିକି ସେ ଆ: ଏ: ପରୀକ୍ଷା ମଧ୍ୟ ଦେଲେ-ନାହିଁ ଓ ଅଗରପଡ଼ା ଚାଲିଯାଇଥିଲେ । ପଢା ଛାଡ଼ି ଥିବାରୁ ତାଙ୍କର ବାପା ଖୁସି ହୋଇଥିଲେ । କାରଣ ଏଣିକି ସେ ଜମିଦାରୀ କଥା ବୁଝିବାକୁ ଘରେ ରହିପାରିବେ । କିନ୍ତୁ ମହତାବ ଖୁବ୍ କମ୍ ଦିନ ଘରେ ରହିଥିଲେ । ସେତିକିବେଳେ ସ୍ତ୍ରୀଙ୍କୁ ଦେଶ କାମରେ ଭାଗ ନେବାକୁ ଶିଖାଇ ଥିଲେ । କିନ୍ତୁ ସୁଭଦ୍ରା ବଦଳି ନଥିଲେ ।

ଆଉଥରେ ପରୀକ୍ଷା ଦେବି ବୋଲି କହି ହରେକୃଷ୍ଣ କିଛି ଟଙ୍କା ଧରି କଟକ ଫେରିଥିଲେ । ଦେଶ କାମ କରିବାକୁ ତାଙ୍କ ପରିବାର ଲୋକଙ୍କୁ ଠକିବାକୁ ପଡ଼ିଥିଲା । ସମସ୍ତଙ୍କଠାରୁ ପନ୍ଦର ଦିନ ପାଇଁ ସମୟ ମାଗି ମହତାବ ସବୁଦିନ ପାଇଁ ଏକ ପ୍ରକାର ଦୂରେଇ ଯାଇଥିଲେ ବୋଲି, ପରେ ଜଣା ପଡ଼ିଥିଲା ।

ମହାତ୍ମାଗାନ୍ଧୀ ଓଡ଼ିଶା ଆସିବାବେଳେ ଭଦ୍ରଖ, କଟକ, ପୁରୀ ଓ ବ୍ରହ୍ମପୁର ଯାଇଥିଲେ । ଘର ସଂସାର ଓ



ଜମିଦାରୀକୁ ଛାଡ଼ି ମହତାବ ଜଣେ କର୍ମୀ ପାଲଟି ଯାଇ-ଥିଲେ । ଗାନ୍ଧୀଙ୍କ ସହ ସେ ଅନ୍ୟ ନେତାଙ୍କ ଗହଣରେ ବୁଲିଥିଲେ । ଭଦ୍ରଖର ସବୁ ଦାୟିତ୍ୱ ତାଂକର ଉପରେ ପଡ଼ିଥିଲା । ଏହାପରେ ମହତାବଂକୁ ଭଦ୍ରଖ ଓ ବାଲେଶ୍ୱର ଜିଲାର କଂଗ୍ରେସ ସଂଗଠନ ଭାର ଦିଆଯାଇଥିଲା । ସେ ଭଦ୍ରଖକୁ ମୁଖ୍ୟ କେନ୍ଦ୍ର କରି ଇଲାକାସାରା କଂଗ୍ରେସ ଆନ୍ଦୋଳନରେ ନିଆଁ ଜାଳି ଦେଇଥିଲେ ।

ସେତେବେଳେ ତାଙ୍କ ଯୋଗୁଁ ବାଲେଶ୍ୱରକୁ ବିଦେଶୀ ଲୁଗା ଆସିବା ବନ୍ଦ ହୋଇଥିଲା । ସେ 'ସ୍ୱରାଜ୍ୟ ସମାଚାର' ନାମକ ଏକ ସାପ୍ତାହିକ ପତ୍ରିକା ଲିଥୋ କରାଇ ବାହାର କରିଥିଲେ । ତହିଁରେ କଂଗ୍ରେସ କଥା ଲେଖା ଯାଉଥିଲା ।

ଏହାପରେ ଗାନ୍ଧିଜୀ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରାଇଥିଲେ । ସେଥିପାଇଁ ଓଡ଼ିଶାରେ ସଜବାଜ ଆରମ୍ଭ ହୋଇଥିଲା । ତେଣୁ ଲୋକଙ୍କୁ ଡରାଇବାକୁ ସରକାର ପୋଲିସଙ୍କ ମାର୍ଫତରେ ରାଜ୍ୟର ବିଭିନ୍ନ ସ୍ଥାନରେ ଘରପୋଡ଼ି ଆରମ୍ଭ କରାଇଥିଲେ ।

ମହତାବ ଭଦ୍ରଖ ଅଞ୍ଚଳରେ ନାନାକଳ କୌଶଳକରି ଘରପୋଡ଼ି ବନ୍ଦ କରାଇଥିଲେ । କଂଗ୍ରେସର ସଭା ସମିତି ଉପରେ ୧୪୪ ଧାରା ଜାରି ହୋଇଥିବା ସତ୍ତ୍ୱେ ଭଦ୍ରଖରେ ସଭା କରାଯାଇଥିଲା । ତେଣୁ ମହତାବ ହାକିମ ମାନଙ୍କର ବିରାଗ ଭାଜନ ହୋଇଥିଲେ । ଗୋଟିଏ ଘରପୋଡ଼ି ଘଟଣାରେ ଜଣେ ପୋଲିସକୁ ଧରି ଲୋକେ ପିଟିଥିଲେ । ମହତାବ ତାକୁ ଉଦ୍ଧାର କରି ଭଦ୍ରଖର ସ୍ୱରାଜ ଆଶ୍ରମରେ ତାର ସେବା କରିଥିଲେ । କିନ୍ତୁ ସେ ଲୋକ ମହାତାବ ଆଦିଙ୍କ ବିରୁଦ୍ଧରେ ସାକ୍ଷୀ ଦେଇଥିଲା । ଫଳରେ ଗୋପବନ୍ଧୁ ଆଦି କେତେଜଣ ଜେଲ ଯାଇଥିଲେ ।

ରାଜ୍ୟର ବଡ଼ ନେତାମାନେ ଜେଲ୍‌ରେ ରହିବାରୁ ମହତାବଙ୍କୁ ଚାରିଆଡ଼େ ଦୌଡ ଧପଡ କରିବାକୁ ପଡ଼ିଥିଲା ସେତିକି ବେଳକୁ ଗାନ୍ଧୀମହାତ୍ମା ବର୍ଦ୍ଦୋଲିଠାରେ ସତ୍ୟାଗ୍ରହ କରିବାର ଆୟୋଜନ କରି ଜେଲ୍ ଯାଇଥିଲେ । କିନ୍ତୁ ହଠାତ୍ ଚୌରୀ ଚୌରା ନାମକ ସ୍ଥାନରେ ଲୋକେ ଥାନା ଓ ପୋଲିସଙ୍କୁ ପୋଡ଼ି ପକାଇବାରୁ ସ୍ଥିତି ସଙ୍ଗୀନ୍ ହୋଇଥିଲା । ଦୁଃଖରେ ଗାନ୍ଧିଜୀ ସତ୍ୟାଗ୍ରହ ବନ୍ଦ କରିଥିଲେ ।

ସତ୍ୟାଗ୍ରହ ବନ୍ଦ କରିବା କଥା ମହତାବଙ୍କୁ ସୁହାଇ ନଥିଲା, କିନ୍ତୁ ଉପାୟ କିଛି ନଥିଲା । ସେତିକି ବେଳେ କନିକାରେ ଜମିଦାରଙ୍କର ଚଉଷଠି କର ବିରୁଦ୍ଧରେ ପ୍ରଜା ଆନ୍ଦୋଳନ ମୁଣ୍ଡଟେକି ଥିଲା । ଓଡ଼ିଶା ଖବର ବୁଝିବାକୁ ଜଣେ ବଡ଼ ନେତା ପଣ୍ଡିତ ମଦନ ମୋହନ ମାଲବ୍ୟ ଲକ୍ଷ୍ନୌ-ଠାରେ ଅପେକ୍ଷା କରିଥିଲେ । ତାଙ୍କୁ ଗୋପନରେ ସାକ୍ଷାତ କରିବା ପାଇଁ ମହାତାବ ଓ ନିରଞ୍ଜନ ପଟ୍ଟନାୟକ ଲକ୍ଷ୍ନୌ ଯାଇଥିଲେ । ପଣ୍ଡିତଜି ସବୁ ଶୁଣିସାରି ଓଡ଼ିଶା ଆସିବେ ବୋଲି କହିଥିଲେ ।

ଏହି ଗୋପନ ସାକ୍ଷାତ କଥା ସରକାରଙ୍କ ଗୋଇନ୍ଦା ବିଭାଗ ଜାଣିଗଲେ । ଫଳରେ କଟକ କାମସାରି ମହତାବ ବାଲେଶ୍ୱରରେ ପହଞ୍ଚିବା ମାତ୍ରେ ତାଙ୍କୁ ୧୦୮ ଦଫାରେ ଗିରଫ କରାଯାଇଥିଲା । ତା ୧୦ । ୭ । ୧୯୨୨ ତାରିଖ ଦିନ ବାଲେ-ଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ୍ ତାଙ୍କ ରାଜଦ୍ରୋହ ଅପରାଧର ବିଚାର କରିଥିଲେ । ୧୩ ତାରିଖ ଦିନ ସେ ବର୍ଷକ ପାଇଁ ଜେଲ ଯାଇଥିଲେ । ଏହା ତାଙ୍କର ପ୍ରଥମ ଜେଲ ଦଣ୍ଡ ଥିଲା । ଏହି ଜୀବନରେ ତାଙ୍କର କିଛି ସାହିତ୍ୟ ଲୋକ ଲୋଚନକୁ ଆସିଥିଲା ।

ବାରମାସ ବଦଳରେ ଏଗାର ମାସ ଜେଲ ଭୋଗି ମହତାବ ବାହୁଡ଼ିଥିଲେ । ଘର, ପରିବାର ଆଦି ଛାଡ଼ିଥିବା ଏହି ସନ୍ନ୍ୟାସୀଙ୍କ ପାଇଁ କଂଗ୍ରେସ ଆଶ୍ରମ ଛଡ଼ା ଅନ୍ୟ କେଉଁଠି ଠାବ ନଥିଲା । ସେତେବେଳକୁ ଗାନ୍ଧୀଙ୍କୁ ଛ'ବର୍ଷ କାରାଦଂଡ଼

ମିଳିଥାଏ । ତେଣୁ ଦେଶରେ ଆନ୍ଦୋଳନ ଧିମେଇ ପଡ଼ିଥାଏ । ଓଡ଼ିଶା ମଧ୍ୟ ତହିଁରୁ ବାଦ୍ ଯାଇ ନଥିଲା ।



ଏହା ପରଠାରୁ ମହତାବଙ୍କ ପ୍ରଚୁର କମ ସହିତ ପ୍ରାଦେଶିକ କମିଟିର କାମ ତଦାରଖ କରିବା ଭାର ମିଳିଥିଲା । ଦେଶରେ ଧିମେଇ ପଡ଼ିଥିବା ଆନ୍ଦୋଳନକୁ ତେଜ ଦେବା ପାଇଁ ମହତାବ ଅଣ୍ଟା ଭିଡ଼ିଥିଲେ । କଟକରେ କିଛିଦିନ କାମ କରି ପୁଣି ବାଲେଶ୍ୱର କାମରେ ନିଜକୁ ଅଜାଡ଼ି ଦେଇଥିଲେ ।

———




# ଜୀବନର ଖୋଲାଚିଠି ଓ ସତ୍ୟାଗ୍ରହ

କଟକରେ ଥିବାବେଳେ ମହତାବ ପ୍ରଚାରର ଉଦ୍ଦେଶ୍ୟରେ ପ୍ରଜାତନ୍ତ୍ର ନାମକ ସାପ୍ତାହିକ ପତ୍ର କାଢି ଥିଲେ । କିନ୍ତୁ ବାଲେଶ୍ୱର ଫେରିବା ପରଠୁ ସେଇଟି ସେଠାରୁ ପ୍ରକାଶ ପାଇଥିଲା । ଆଜ ତାହା କଟକରୁ ଦୈନିକ ଭାବେ ବାହାରୁଛି ।

୧୯୨୩ ମସିହାରେ ମହତାବ ନିଜ ଘରକୁ ଯାଇଥିଲେ । ସେତେବେଳେ ସର୍ଭେଏ ତାଙ୍କୁ ପୂର୍ବପରି ଘରେ ରହିଯିବାକୁ କହିଥିଲେ । ସ୍ତ୍ରୀ ସୁଭଦ୍ରା ଏହି ସମୟରେ ତାଙ୍କ ନୀତି ଓ ଆଦର୍ଶ ଦିଗକୁ ଢଳିଥିଲେ । କିନ୍ତୁ ବାପା କୃଷ୍ଣଚରଣ ଆଗଭଳି ନିଜ ପଥରପରି ରହିଥିଲେ । ମହତାବ ପୁଣି କର୍ମକ୍ଷେତ୍ର ବାଲେଶ୍ୱରକୁ ଲେଉଟି ଆସିଥିଲେ ।

ବହୁ ଅଭାବ ସତ୍ତ୍ୱେ ପ୍ରଜାତନ୍ତ୍ର ପାଇଁ ଏକ ଛାପାଖାନା ବସାଇବା ପରେ, ପୁଣି ପ୍ରଜାତନ୍ତ୍ର ବାହାରି ଥିଲା । ତାହାର ଗ୍ରାହକ ସଂଖ୍ୟା ମଧ୍ୟ ବଢିଥିଲା । ବାଲେଶ୍ୱର ମ୍ୟୁନିସିପାଲିଟିକୁ ମହତାବ ଭୋଟ ପାଇ ଯାଇଥିଲେ । ତା ପରେ ଜିଲ୍ଲା ବୋର୍ଡ଼ର ନିର୍ବାଚନ ଆସିଥିଲା ତହିଁରେ କଂଗ୍ରେସ ଦଳ

ଲଢେଇ କରି ଜଣିଥିଲେ ଓ ମହାନ୍ତାବଙ୍କୁ ଚେୟାର୍‌ମ୍ୟାନ୍ କରା ଯାଇଥିଲା । ଏମାନେ ଲୋକ ହିତକର କାମକରି ନାଁ କରି ପାରିଥିଲେ ।

ଏତେ ସତ୍ତ୍ୱେ ଅଭାବ ଛାଡ଼ୁ ନଥାଏ । ଏତେ ବଡ଼ ଜମିଦାର ହୋଇ ମହନ୍ତାବ ନିଜର ନିଉମୋନିଆ ଚିକିତ୍ସା ପାଇଁ ଅନ୍ୟର ସାହାଯ୍ୟ ନେବାକୁ ପଡ଼ୁଥିଲା । ତେଣୁ ବିବେକ ମନା କଲେ ବି ଅଭାବରେ ପଡ଼ି ମହନ୍ତାବ ନିଜର ଜମିଦାରୀ ଉପରେ ଆଖି ପକାଇଥିଲେ । ଫଳ ସ୍ୱରୂପ ତାଙ୍କର ଜଣେ ସହକର୍ମୀ ଅଭିରାମ ନନ୍ଦ ତାଙ୍କଠୁ ଆଇନଗତ ଅଧିକାର ନେଇ ଅଗରପଡ଼ା ଜମିଦାରୀ ଦଖଲ କରିଥିଲେ ।

ଏହି ଆଘାତରେ ପିତା କୃଷ୍ଣ ଚରଣ ତୀର୍ଥ କରିବାକୁ ଚାଲି ଯାଇଥିଲେ । ଅଭିରାମ ନନ୍ଦ କହାଠୁଁ ସହଯୋଗ ପାଇନଥିଲେ । ତଥାପି ମହନ୍ତାବଙ୍କ ହାତକୁ ଟଙ୍କା ପଇସା ଆସିଥିଲା । ବାପା ତାଙ୍କର ତୀର୍ଥରୁ ଫେରି ଘରଠାରୁ ଟିକିଏ ଛାଡ଼ି ରହିଥିବା ମନ୍ଦିରରେ ସନ୍ୟାସୀ ହୋଇ କାଳପାତ କରିଥିଲେ ।

ସବୁ ଆଡକୁ ଚାହିଁ ମହନ୍ତାବ, ଅଭିରାମ ନନ୍ଦଙ୍କୁ ଶେଷରେ ଫେରାଇ ଆଣିଥିଲେ । ତାଙ୍କ ସାନଭାଇ କାହ୍ନୁ ଚରଣ ଏଥର ତାଙ୍କ ପ୍ରତିନିଧି ଭାବେ ଜମିଦାରି ବୁଝିବାରୁ ଗୃହ ଅଶାନ୍ତି ଏକ ପ୍ରକାର ଦୂର ହୋଇଥିଲା ।

ଜିଲ୍ଲା ବୋର୍ଡରେ ଥାଇ ମହାନ୍ତାବ ଯଥେଷ୍ଟ ଲୋକ ହିତକର କାମ କରିଥିଲେ । ଶିକ୍ଷା, କୃଷି

ଓ ଜଳସେଚନ ଉନ୍ନତରେ ତାଙ୍କର ଝୋଲପଣ ହୋଇଥିଲା । କନିକା ଆନ୍ଦୋଳନ ମଧ୍ୟ ତାଙ୍କ ଉଦ୍ୟୋଗରେ ଚାଲିଥିଲା । ଏହାପରେ ସେ ବିହାର ଓଡ଼ିଶା ଲାଟ୍ ସଭାରୁ ନିର୍ବାଚିତ ହୋଇ ଥିଲେ ୧୯୨୭ ମସିହାର ବାଲେଶ୍ୱର ବନ୍ୟା ବେଳେ ତାଙ୍କର କାମ ବଢ଼ିଥିଲା । ଲୋକଙ୍କୁ ଚୂଡ଼ା ଚାଉଳ ବାଣ୍ଟିବାକୁ ତାଙ୍କ ଦଳ କଠିନ ପରିଶ୍ରମ କରିଥିଲେ ।

ଏହି ସମୟରେ ମହତାବଙ୍କ ଉପରେ ଜମିଦାରମାନଙ୍କ ଆଡ଼ୁ ବିପଦ ପଡ଼ିଥିଲା । ପ୍ରଥମଟି ତାଙ୍କର ଲାଟ୍ ସଭାକୁ ନିର୍ବାଚନ ମକଦ୍ଦମା । ସେଇଟି ପରେ ଏକ ଫୌଜଦାରି ମକଦ୍ଦମାରେ ଲକ୍ଷାଧିକ ଟଙ୍କାର ମାମଲା । ବେଡ଼ି ଉପରେ କୋରଡ଼ା ପରି ଅଭାବ ମଧ୍ୟ ଲାଗିଥାଏ । ସେତିକି ବେଳେ ଗାଁକୁ ଯାଇ ସେ ପାଳିକା ମାତାଙ୍କର ସେବା କରିଥିଲେ ଓ ସମସ୍ତଙ୍କ ସହାନୁଭୂତି ପାଇଥିଲେ । ମା' ମରିଯିବା ପରଠାରୁ ଘରର ଅବସ୍ଥା ବଦଳିଥିଲା । ସ୍ତ୍ରୀ ସୁଭଦ୍ରାଙ୍କୁ ଆଣି ବାଲେ-ଶ୍ୱରରେ ରଖିଥିଲେ ।

ଦୁଇଟି ଯାକ ମକଦ୍ଦମାରୁ ଶେଷରେ ମହତାବ ଖଲାସ ହୋଇଥିଲେ । ତାପରଠାରୁ ବାଲେଶ୍ୱରରେ କିପରି ଲୁଣମରା ଆନ୍ଦୋଳନ ହୋଇପାରିବ, ସେଥିପାଇଁ ସଙ୍ଗଠନ ଆରମ୍ଭ କରିଥିଲେ ।

୧୯୩୦ରେ ମହତାବଙ୍କୁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି କରାଯାଇଥିଲା । ଯଥା ସମୟରେ ଭାରତ-

ସାରା ଲୁଣମରା ଆନ୍ଦୋଳନ ଚାଲିଲା । ଓଡ଼ିଶାରେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଠାରେ ହୋଇଥିବା ସତ୍ୟାଗ୍ରହ ଭାରତରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ଫଳ ସ୍ୱରୂପ ତା ୧୭ । ୪ । ୧୯୩୦ ଋଖରେ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ମହତାବଙ୍କୁ



ପୋଲିସ ବାଲେଶ୍ୱର ସତ୍ୟାଗ୍ରହ ଶିବିରରେ ଗିରଫ କରି-ଥିଲେ । ସେଥିରେ ଦୁହିଁଙ୍କୁ ଦେଢ଼ ବର୍ଷ କରି ସଜା ହୋଇ-ଥିଲା ।

୧୯୩୨ରେ ଗାନ୍ଧିଜୀ ବିଲାତ ଯାଇ ଗୋଲଟେବୁଲ୍ ବୈଠକରୁ କରାଶରେ ଫେରିଥିଲେ । ଫଳରେ ଦେଶସାରା ପୁଣି ଆନ୍ଦୋଳନ ଆରମ୍ଭ ହୋଇଗଲା । ଓଡ଼ିଶାର ସବୁ ବଡ଼ ବଡ଼ ନେତା ଧରା ହେଲେ । ବାଲେଶ୍ୱରରୁ ମହତାବ ବି ଧରା ହୋଇ ଛ'ମାସ ସଜା ଭୋଗିଲେ ।

ସେତେବେଳକୁ ସ୍ତ୍ରୀ ସୁଭଦ୍ରା ସ୍ୱାମୀଙ୍କର ପଥ ଅନୁସରଣ କରି ସାରିଥିଲେ । ବାଲେଶ୍ୱର ଜିଲ୍ଲାରେ ଗାଁ ଗାଁ ବୁଲି ନାରୀ ସଙ୍ଗଠନ କରିବା ତାଙ୍କର ନୀତି ହୋଇଥିଲା । ଫଳରେ ତାଙ୍କୁ ମଧ୍ୟ ତିନିମାସ ସଜା ହୋଇ ମହତାବ ଥିବା ବିହାରର ହଜାରିବାଗ ଜେଲ୍‌କୁ ପଠାଯାଇଥିଲା ।

ମହତାବଙ୍କର କାରାବାସ ବେଳେ ତା ୭ । ୪ । ୧୯୩୨ ରିଖ ଦିନ ପିତା କୃଷ୍ଣଚରଣ ଦେହ ଛାଡ଼ିଥିଲେ । ଜେଲରେ ଏ' ଖବର ପାଇ ଉଭୟ ସ୍ୱାମୀ-ସ୍ତ୍ରୀ ଖୁବ୍ ଦୁଃଖ ପାଇଥିଲେ । ତଥାପି ଜେଲ୍‌ରୁ ମୁକ୍ତିଳ ମହତାବ ଗାଁକୁ ଯିବା ଉଚିତ ମଣି ନଥିଲେ । ସେତେବେଳକୁ ପ୍ରଜାତନ୍ତ୍ର ଉପରେ ମକଦମା ଲାଗିଥାଏ । ମହତାବ କଟକ ଆସି ଜଣକର ବାରଣ୍ଡାରେ ଆଶ୍ରୟ ନେଇ କଂଗ୍ରେସର କାମ କରିଥିଲେ । କାରଣ, କାହା ଘରେ ମୁଣ୍ଡ ଗୁଞ୍ଜିଲେ ବିଚରା ଗୃହ ମାଲିକ ପୋଲିସ୍ ଆଖିରେ ପଡ଼ି ଦଣ୍ଡ ପାଇବ ।

କଟକର ସ୍ୱରାଜ୍ୟ ଆଶ୍ରମକୁ ପୋଲିସ୍ ଦଖଲ କରିଥିଲା । ତାହା ଅଧିକାର କରିବାକୁ ମହତାବ ସେ୍ଚ୍ଛାସେବକ ଦଳ ଗଢ଼ିଥିଲେ । ନାନା ପ୍ରକାର ବାଧା ପରେ ଆଶ୍ରମଟି ଦଖଲକୁ ଆସିଥିଲା । ତାପରେ ପୁଣି ତାଙ୍କୁ ଜେଲ୍ ଯିବାକୁ ପଡ଼ିଥିଲା ।

ଏହାପରେ ଖଦି କାମ ଓ ହରିଜନ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଜୁହୁଠାରେ ମହତାବ ଗାନ୍ଧୀଙ୍କୁ ଭେଟି ପରାମର୍ଶ ନେଇଥିଲେ । ଫଳରେ ତ ୪ । ୧୦ । ୧୯୩୨ ରିଝରେ ନିଜ

ଗାଁର ନିଜବଂଶ ଦ୍ୱାରା ପ୍ରତିଷ୍ଠିତ ମନ୍ଦିରରେ ସେ ହରିଜନମାନଙ୍କୁ ପ୍ରବେଶ ସୁବିଧା ଦେଇଥିଲେ । ନିଜ ଗାଁରେ ଏକ ଚିକିତ୍ସାଳୟ ଓ ହାଇସ୍କୁଲ ମଧ୍ୟ ନିଜ ଜମିଦାରୀର ଖର୍ଚ୍ଚରେ ବସାଇଥିଲେ । ତା'ଛଡ଼ା ପିତାଙ୍କର ମନ୍ଦିରଟିକୁ ସେ 'ଗାନ୍ଧୀ କର୍ମ ମନ୍ଦିର'ରେ ପରିଣତ କରି ସେଠାରେ ସୂତାକଟା ଆଦି କାମ ଆରମ୍ଭ କରାଇଥିଲେ ।

ଗାଁ ଗାଁ ବୁଲି ସୁଭଦ୍ରା ସ୍ତ୍ରୀ ଲୋକଙ୍କ ଭିତରେ ସୂତାକଟାର ପ୍ରଚାର କରୁଥିଲେ । ଏହି ବେଳାରେ ଗାନ୍ଧିଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ଡାକ ଦେଇଥିଲେ । କିନ୍ତୁ ମହତାବ କେବଳ କର୍ମ ମନ୍ଦିରର ପ୍ରସାର ଦିଗରେ ମନ ଦେଇଥିଲେ । ଏହାପରେ ଗାନ୍ଧୀଙ୍କ ଇଚ୍ଛାରେ ବ୍ୟକ୍ତିଗତ ସତ୍ୟାଗ୍ରହ ବନ୍ଦ ହୋଇଥିଲା । କଂଗ୍ରେସ କର୍ମୀମାନେ ଗାଁ ଗହଳରେ ମହତାବଙ୍କ ପରି ଗଠନ ମୂଳକ କାମ ଆରମ୍ଭ କରିଥିଲେ ।

ଫଳରେ ୧୯୩୩ ମସିହା ସତ୍ୟାଗ୍ରହ ବନ୍ଦଠାରୁ ୧୯୩୭ ଯାଏଁ ମହତାବ ନିଜ ଗାଁକୁ ମୁଖ୍ୟକରି ଲୋକହିତକର କାମମାନ କରିଯାଇଥିଲେ । ତା ଭିତରେ କଂଗ୍ରେସର ଅନେକ କାମ ତାଙ୍କର ମୁଖ୍ୟ ହୋଇଥିଲା ।



# କଂଗ୍ରେସର ପ୍ରାଦେଶିକ ଭାର, ଶାସନ ଓ କେନ୍ଦ୍ର

୧୯୩୭ରେ ମହତାବ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ହୋଇ କଟକ ବୈଠକରେ ମିଶିଥିଲେ । ତାପରେ ପଣ୍ଡିତ ନୀଳ ନୀଳକଣ୍ଠଙ୍କୁ ହରାଇ ସେ ସଭାପତି ଓ ନବକୃଷ୍ଣ ଚୌଧୁରୀ ସମ୍ପାଦକ ହୋଇଥିଲେ । କିନ୍ତୁ ବିବାଦ ବଢୁଥିଲା । ଫଳରେ ଗୋପବନ୍ଧୁ ଚୌଧୁରୀଙ୍କୁ ମହତାବ ନିଜର ଦାୟିତ୍ୱ ବଢାଇ ଓହରି ଯାଇଥିଲେ । କିନ୍ତୁ ଆହୁରି ଅନେକ ଭାର ତାଙ୍କ ଉପରେ ରହିଥିଲା । ତାହା ମଧ୍ୟରୁ ଗଡ଼ଜାତ କାମ ଗୋଟିଏ ଥିଲା ।



ଏହାପରେ ଓଡ଼ିଶାର କେତେକ ଗଡଜାତରେ ଅଶାନ୍ତି ଦେଖା ଯାଇଥିଲା । ସେତେବେଳକୁ ନିଖିଳ ଭାରତ ଗଡଜାତ ପ୍ରଜା ସମ୍ମିଳନୀ ଗଢା ଯାଇଥାଏ । ଏହି ସମ୍ମିଳନୀ ଗଡଜାତ

ପ୍ରଜାଙ୍କ ଅଭାବ-ଅଭିଯୋଗ ବୁଝିବା ଭାର ନେଇଥାଏ । ମହାତାବ ତାହାର ଜଣେ ସଭ୍ୟ ଥାଇ ପରେ ଓଡ଼ିଶା ପାଇ ତଦନ୍ତ କମିଟିର ଅଧ୍ୟକ୍ଷ ହୋଇଥିଲେ । ଢେଙ୍କାନାଳର ସାରଙ୍ଗଧର ଦାସ ଓଡ଼ିଶା ଶାଖାର ସମ୍ପାଦକ ଥାଇ ଏହି କମିଟିର ମଧ୍ୟ ସମ୍ପାଦକ ହୋଇଥିଲେ ।

ଏହି ସମୟରେ ହଠାତ ପ୍ରାୟ ସବୁ ଗଡଜାତରେ ପ୍ରଜା ମଣ୍ଡଳ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏସବୁ ମଧ୍ୟରେ ମହତାବ ପ୍ରଥମେ ନୀଳଗିରି ଆନ୍ଦୋଳନର ସମାଧାନ କରିଥିଲେ । ତା'ପରଠୁ ସମ୍ପାଦକ ସାରଙ୍ଗଧର ଦାସ ତାଙ୍କର ବିରୋଧ କରିଥିଲେ । କିନ୍ତୁ ମହତାବ ଅବିଚଳିତ ଥିଲେ । ଏହା ପରେ ଢେଙ୍କାନାଳ ବିଦ୍ରୋହ ବେଳକୁ ମହତାବ ତାହା ସହିତ ଜଡ଼ିତ ହୋଇ ନଥିଲେ । ତାଲଚେର ବେଳକୁ ସେ ଦିଲ୍ଲୀରେ ଥିଲେ । ସେଠି ଗାନ୍ଧିଜୀ ତାଙ୍କୁ ଏହାର ସମାଧାନ କରିବାକୁ କହିଥିଲେ ।

ମହତାବ ରାଜା ଓ ଇଂରେଜ ସରକାର ଉଭୟଙ୍କୁ ଆପୋଷରେ ରଖି ପ୍ରଜାଙ୍କ ସ୍ୱାର୍ଥ ଉପରେ ବାଧା ନ ଆସିବା ଭଳି ସମାଧାନର ଉଦ୍ୟମ କରିଥିଲେ । ଅନ୍ୟ ଗଡଜାତରେ ଆନ୍ଦୋଳନ ଅସ୍ତେ ଅସ୍ତେ ବଢି ଚାଲିଥିଲା । ଢେଙ୍କାନାଳ ବିଦ୍ରୋହ ତୁଟି ନଥାଏ । ଏଣେ ରଣପୁରରେ ମେଜି ଝଟି ବେଜେଲ ଗେଟ ହତ୍ୟାକାଣ୍ଡ ଘଟିଗଲା । ଏହିପରି ଅସୁବିଧା ଭିତରେ ମହତାବ ସରକାର ଓ ରାଜା ମାନଙ୍କ ଟଣା ଓଟରା ଭିତରେ ପଡ଼ିଥିଲେ । ଏପରିକି ରଣପୁର ଘଟଣାରେ ତାଙ୍କୁ ଯୋଡ଼ିବାକୁ ଉଦ୍ୟମ ହୋଇଥିଲା ।

ତଥାପି ଅବିଚଳିତ ମହତାବ ଗଡଜାତର ପ୍ରକୃତ ତଥ୍ୟ ଲେଖି ବଡ ଲାଟଙ୍କୁ ଦେବାପାଇଁ ଚେଷ୍ଟା କରିଥିଲେ । ବଡ଼ ଲାଟଙ୍କୁ ଛାପା ବିବରଣୀ ତା'ପରେ ଦିଆ ଯାଇଥିଲା ଓ ତାହା



ବିଲାତରେ ଆଲୋଚନା ହୋଇଥିଲା । କିନ୍ତୁ ଦ୍ୱିତୀୟ ମହାଯୁଦ୍ଧ ଯୋଗୁଁ ବିଶେଷ କିଛି ହୋଇ ନପାରି ସବୁ ଧିମେଇ ଯାଇଥିଲା ।

୧୯୩୮ ରେ ମହତାବ କଂଗ୍ରେସର କାର୍ଯ୍ୟ ନିର୍ବାହକା ସମିତିରେ ଓଡ଼ିଶା ତରଫରୁ ଯୋଗ ଦେଇଥିଲେ । ଏଥିରେ ରହି ସେ ମଧ୍ୟ ପ୍ରଦେଶର ନିର୍ବାଚନ ବିବାଦ ତଦନ୍ତ କରିଥିଲେ ୧୯୪୨ରୁ ୧୯୪୫ ମସିହା ଯାଏଁ ସେ ଅହମ୍ମଦ ନଗର ଦୁର୍ଗରେ ବନ୍ଦୀ ହୋଇ ରହିଥିଲେ । ଏହା ଅଗଷ୍ଟ ନଅର ଘଟଣା । ୧୯୪୫ର ଅପ୍ରେଲ ମାସରେ ତାଙ୍କୁ ସମ୍ବଲପୁର ଜେଲକୁ

ଅଣାଯାଇ ଥିଲା ଓ ମାସେ ପରେ ଖଲାସ କରି କଟକ ପଠାଇ ଦିଆ ଯାଇଥିଲା ।

କଟକ ରହଣୀ ଭିତରେ ଲୁଚ୍ଚିଛପାରେ ତାଙ୍କର କଂଗ୍ରେସ କାମ ଚାଲିଥିଲା । ଏହାପରେ ଇଂରେଜ ସରକାର କଂଗ୍ରେସ ସହ ଆପୋଷ ବୁଝାମଣା କରି ନେଇଥିଲେ । ତାର ଫଳରେ ୧୯୪୭ ମସିହା ଅପ୍ରେଲ ମାସରେ ମହତାବଙ୍କୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଭାର ମିଳିଥିଲା । ଏଥିପାଇଁ ନିର୍ବାଚନ ହୋଇଥିଲା । କଂଗ୍ରେସର ବିପୁଳ ବିଜୟ ଘଟିବାରୁ ମହତାବ କେବିନେଟ୍ ମିଶନରେ ଯୋଗ ଦେଇ ପାରିଥିଲେ ।

ସେତେବେଳକୁ ଭାରତ ସ୍ୱାଧୀନତା ପାଇବାର ଷୋଳପଣ ଆଶା ଦେଖା ଯାଇଥାଏ । ତେଣୁ ମୁସଲିମ ଲିଗ୍ ଦଳ ଅଲଗା ପାକିସ୍ଥାନ ଗଢିବାକୁ ଜିଦ୍ ଧରିଥାନ୍ତି । ଏହି ସମସ୍ୟା ସମାଧାନ ପାଇଁ ମହତାବ ପ୍ରଥମେ ଆଗେଇ ଥିଲେ । କିନ୍ତୁ ଅନ୍ୟ କାହାରି ସହଯୋଗ ନପାଇ, ସ୍ୱାଧୀନ ଭାରତରେ ଗଡ଼ଜାତ ଗୁଡ଼ିକର ମିଶ୍ରଣ ପାଇଁ ଚେଷ୍ଟା କରିଥିଲେ । ତାପରେ ଦିଲ୍ଲୀର କେବିନେଟ୍ ମିଶନରୁ ଫେରି ସେ ଓଡ଼ିଶାର ମନ୍ତ୍ରୀମଣ୍ଡଳ ଗଢିଥିଲେ ।

ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହୋଇ ତିନୋଟି ବିଷୟକୁ ଅଧିକ ନଜର ଦେଇଥିଲେ । ଗୋଟିଏ ଗଡ଼ଜାତ ମିଶ୍ରଣ, ଆଉ ଗୋଟିଏ ବନ୍ୟା ନିୟନ୍ତ୍ରଣ ପାଇଁ ମହାନଦୀ ଯୋଜନା ଓ ହିରାକୁଦ ବନ୍ଧ ଏବଂ ଅନ୍ୟଟି ଭୁବନେଶ୍ୱରରେ ନୂଆ ରାଜଧାନୀ ଗଠନ । ୧୯୪୫ ମସିହାରେ ହୀରାକୁଦ ଠାରେ

ବନ୍ଧର ଭିତ୍ତି ସ୍ଥାପନ କରାଯିବା ପରଠାରୁ ବନ୍ଧ ବିରୋଧ ଆନ୍ଦୋଳନ ଲାଗି ଆସିଥିଲା । ମହତାବ ଏହା ବହୁତ କଷ୍ଟରେ ସମାଧାନ କରି କେନ୍ଦ୍ର ସାହାଯ୍ୟରେ ବନ୍ଧ ଗଢା କାମ କରାଇ ଥିଲେ ।

ଏହାପରେ ଗଡ଼ଜାତ ମିଶ୍ରଣ କାମ ପାଇଁ ସେ ବହୁ ଦିଗରୁ ଚେଷ୍ଟା ଚଳାଇଥିଲେ । ନିଜେ ରାଜାମାନଙ୍କ ସହ ଆଲୋଚନା କରିଥିଲେ । ଚିଠି ପତ୍ର ବି ଦିଆନିଆ କରିଥିଲେ । ଏହି କାମର ଆରମ୍ଭ ସେ ୧୯୩୩ ମସିହାରୁ କରିଥିଲେ । ତାହା ଭାରତର ସ୍ୱାଧୀନତା ପରେ ସଫଳ ହୋଇଥିଲା ।



୧୯୩୨-୩୩ ମସିହାଠାରୁ 'ପ୍ରଜାତନ୍ତ୍ର' ବନ୍ଦ ହୋଇ ଯାଇଥିଲା । ପରେ ୮।୯।୮।୧୯୪୭ ରିଖରୁ ତାହା କଟକରୁ ପ୍ରକାଶ ପାଇଥିଲା ଓ ଆଜଯାଏଁ ବାହାରୁଛି । ତା' ପରଠାରୁ ତାଙ୍କର ଓଡ଼ିଶା ଇତିହାସ ଓ ଅନ୍ୟ ବହିଗୁଡ଼ିକ ଅନନ୍ତ ମିଶ୍ରଙ୍କ ଉଦ୍ୟମରେ ପ୍ରକାଶ ପାଇଥିଲା ।

ତା'ପରେ ତା ୧୫ । ୮ । ୧୯୪୭ ରେ ଭାରତ ସ୍ୱାଧୀନତା ପାଇଥିଲା । ଏହା ପରଠାରୁ ଗଡ଼ଜାତ ମିଶ୍ରଣ ପାଇଁ ମହତାବ ଦିନ ଓ ରାତିକୁ ଏକ କରି କଠିନ ପରିଶ୍ରମ କରିଥିଲେ । ସେଥିପାଇଁ କେନ୍ଦ୍ରରୁ ସର୍ଦ୍ଦାର ପଟେଲ ଆସିଥିଲେ । ଗଡ଼ଜାତର ରାଜାମାନେ କଟକରେ ଏକାଠି ହୋଇଥିଲେ । ବହୁ ଚେଷ୍ଟାରେ ୧୯୪୮ ମସିହା ଜାନୁଆରୀ ଏକ ତାରିଖ ଦିନ ଗଡଜାତ ଗୁଡ଼ିକ ଓଡ଼ିଶାରେ ମିଶିଲା । କେବଳ ମୟୁରଭଞ୍ଜ ବାକି ଥାଏ ।



ସର୍ଦ୍ଦାର ପଟେଲ ଓଡ଼ିଶାରୁ ଖୁସିରେ ବିଦାୟ ନେଲେ । ପରେ ପରେ ଅନ୍ୟ ଗଡ଼ଜାତ ଗୁଡ଼ିକ ସ୍ୱାଧୀନ ଭାରତରେ ମିଶି ଯାଇଥିଲା । ବାକିଥିବା ମୟୁରଭଞ୍ଜ ମଧ୍ୟ ଓଡ଼ିଶାରେ ମିଶିଥିଲା । କାଲି କାଲି ଧରି ରାଜ ରାଜୁଡ଼ାରେ

ସଢ଼ୁଥିବା ପ୍ରଜାମାନେ ଶେଷରେ ସ୍ୱାଧୀନତାର ଆଲୁଅ ଦେଖିଥିଲେ ।

୧୯୫୦ ରୁ ୧୯୫୨ ମସିହାଯାଏ ନେହେରୁଙ୍କ ଡାକରେ ଦିଲ୍ଲୀର କେନ୍ଦ୍ର ଶାସନରେ ଶିଳ୍ପ ବାଣିଜ୍ୟ ମନ୍ତ୍ରୀ ଭାବେ ଦାୟିତ୍ୱ ତୁଲାଇ ଥିଲେ । ତା'ପରେ ୧୯୫୨ ରୁ ୧୯୫୪ ଯାଏଁ ଶାସକ କଂଗ୍ରେସ ଦଳର ସାଧାରଣ ସମ୍ପାଦକ କାର୍ଯ୍ୟ ତୁଲାଇଥିଲେ । ଶେଷରେ ୧୯୫୫ ରୁ ୧୯୫୬ ବମ୍ବେର ରାଜ୍ୟପାଳ ହୋଇଥିଲେ । ଏହି ସାତ ବର୍ଷ ପାଖାପାଖି ସମୟ ଓଡ଼ିଶା ବାହାରେ ରହିଥିଲେ ବି, ମହତାବ ଓଡ଼ିଶାକୁ ଭୁଲି ନଥିଲେ । କେନ୍ଦ୍ରରେ ରହି ଓଡ଼ିଶାକୁ ସବୁ ପ୍ରକାର ସାହାଯ୍ୟ ସହଯୋଗ ଦେଉଥିଲେ ।

୧୯୫୭ ମସିହାରେ ଓଡ଼ିଶାରେ ଯେଉଁ ନିର୍ବାଚନ ହୋଇଥିଲା, କଂଗ୍ରେସ ତରଫରୁ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ୧୯୬୧ ପର୍ଯ୍ୟନ୍ତ ସେ ଓଡ଼ିଶାର ଶାସନ ଚଳାଇ ସର୍ବାଙ୍ଗୀନ ଉନ୍ନତି କରିବାକୁ ଉଦ୍ୟମ କରିଥିଲେ । କଂଗ୍ରେସରେ ପୁରୁଣା ଓ ନୂଆଙ୍କର ଭିତରି ଟଣା ଓଟରା ସବୁବେଳେ ଲାଗି ରହିଥିଲା । ସେତେବେଳେକୁ ବିଜୁ- ପଟ୍ଟନାୟକ, ବୀରେନ ମିତ୍ର ଆଦି କଂଗ୍ରେସ କର୍ମୀ ଓଡ଼ିଶା ରାଜନୀତିରେ ଚକା ପକାଇ ବସିଥିଲେ ।

୧୯୬୧ ରେ ମହତାବଙ୍କ ମନ୍ତ୍ରୀ ମଣ୍ଡଳର ସମୟ ପୂରି ଯାଇଥିଲା । କଂଗ୍ରେସ ଭିତରେ ଦଳଗତ ଲଢ଼େଇ ଆରମ୍ଭ ହୋଇଥିଲା । ୧୯୬୬ ମସିହାରେ ମହତାବ କଂଗ୍ରେସ ଛାଡ଼ି

କଂଗ୍ରେସର ମୂଳଭିତ୍ତି ଉପରେ ନୂଆ କରି ପ୍ରତିଷ୍ଠିତ ହେବାକୁ ଯାଉଥିବା 'ଜନକଂଗ୍ରେସ' ଦଳ ଗଢ଼ିଥିଲେ । ସେତିକବେଳେ ଜରୁରୀ ପରିସ୍ଥିତି ଘଟିଥିଲା । ସେତେ-ବେଳର ଶାସକ ମହତାବଙ୍କୁ ୧୮ ମାସ କାଳ ଜେଲରେ ଅଟକ ରଖିଥିଲେ ।



ତା' ପରଠାରୁ ମହତାବ ଆଉ ପ୍ରତ୍ୟକ୍ଷ ରାଜନୀତିରେ ଯୋଗ ଦେଇ ନାହାନ୍ତି । ବରଂ କଟକର ପ୍ରଜାତନ୍ତ୍ର ପରିସର ଓ ଭୁବନେଶ୍ୱର ଠାରେ ଥିବା ତାଙ୍କ ନିଜ ଘର ଏକାମ୍ର ନିବାସରେ ବସି ରାଜନୀତିଜ୍ଞ ଦିଆଁରେ ମନ ଢାଳିଛନ୍ତି । ଭାରତର ତିନଗୋଟି ବିଶ୍ୱବିଦ୍ୟାଳୟ ତାଙ୍କୁ ତାଙ୍କର ମୂଲ୍ୟବାନ ଲେଖାପାଇଁ ସମ୍ମାନିତ କରିଛନ୍ତି । ପ୍ରାୟ ୨୨ ଖଣ୍ଡି ବହି ତାଙ୍କ ହାତରୁ ଲୋକ ଲୋଚନକୁ ଆସି ପାରିଛି ।

— ୦ —

# ଶେଷରେ କିଛି ମନେ ରଖିବା କଥା

ଜନ୍ମଭୂଇଁ ଅଗରପଡା ପ୍ରତି ମହତାବଙ୍କର ମୋହ ଥିଲା । ତେଣୁ ନିଜର ଛୁଆପିଲା ନଥିଲେବି ଝିଆରୀ ପୁତୁରାଙ୍କ ବିଭା ନିମିତ୍ତରେ ସେ ଗାଁକୁ ଯାଇ ସବୁକାମ ବୁଝୁଥିଲେ । ସେଠା ଲୋକଙ୍କ ସହ ମିଶି ଭୋଜୀ ଭାତ ଖାଉଥିଲେ । ଗାଁର ବହୁବିଧ ଉନ୍ନତି ତାଙ୍କ ହାତରେ ହୋଇଛି ।

ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନିତ କରି ଡକ୍ଟର ଉପାଧି ଦେଇଥିଲେ । ଶେଷ କାଳରେ ସେ ଏକ ଇଂରେଜୀ ବହି ଲେଖି ୧୯୫୦ ରୁ ୧୯୫୭ ମସିହା ଯାଏଁ ତାଙ୍କ କାର୍ଯ୍ୟକଳାପ ବର୍ଣ୍ଣନା କରିଛନ୍ତି । ପ୍ରଜାତନ୍ତ୍ରର ଧାରାବାହିକ ଲେଖା ଗାଁ ମଜଲିସ ତାଙ୍କର ଏକ ମହାନ କୃତି ।

ଗଡ଼ଜାତ ମିଶ୍ରଣ ଓ ହୀରାକୁଦ ବନ୍ଧ ତାଙ୍କ ଦ୍ୱାରା ହୋଇ ପାରିଥିଲା । ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ଭୁବନେଶ୍ୱରରେ ନୂଆ ରାଜଧାନୀ ମଧ୍ୟ ପ୍ରତିଷ୍ଠା ହୋଇ ପାରିଥିଲା । ଉତ୍କଳ ବିଶ୍ୱବିଦ୍ୟାଳୟ ଓ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ସହିତ କଟକର ଆକାଶବାଣୀ ତାଙ୍କର ଅମଳର ଅନୁଷ୍ଠାନ । ବାରବାଟି ଷ୍ଟାଡ଼ିଅମ୍ ମଧ୍ୟ ତାଙ୍କର ଚେଷ୍ଟାରେ ଗଠିତ । ପରେ ବୈଦେବ ମହାନ୍ତି ଏହି ଅନୁଷ୍ଠାନକୁ ବଢ଼ାଇ ଦେଇଥିଲେ ।

ଏଭଳି ଜଣେ ମହାପୁରୁଷ ନିଜର ଶେଷ ଜୀବନରେ ଦୀର୍ଘ ତିରିଶ ବର୍ଷ ଜଣେ ବିରୋଧୀ ନେତା ପରି ରହିଥିଲେ ।

ତା ୨ । ୧ । ୧୯୮୭ ରାତି ଦୁଇ ପ୍ରହର ଆଗରୁ ତାଙ୍କ କର୍ମମୟ ଜୀବନର ହଠାତ ଅବସାନ ଘଟିଲା । କଳିଙ୍ଗ କେଶରୀ ମହତାବ ଆଉ ଇହ ଜଗତରେ ନାହାନ୍ତି ବୋଲି ଖବର ପ୍ରଚାର ହେବା ମାତ୍ରେ, ଚାରିଆଡ଼େ ଦୁଃଖ-ଶୋକ ଭରିଗଲା । ଲୋକେ ତାଙ୍କର ଶେଷ ଦର୍ଶନ କରିବାକୁ ଭୁବନେଶ୍ୱର ଛୁଟିଲେ। ତା'ପରେ ଭୁବନେଶ୍ୱରରୁ କଟକ ଓ କଟକରୁ ଅଗରପଡ଼ା ।



ଅଗରପଡା ମାଟିରେ ତାଙ୍କର ଚିତା ଜଳିଲା । ହଜାର ହଜାର ଲୋକ ଆଖି ଲୁହରେ ତାଙ୍କ ଚିତା ପାଉଁଶକୁ ଚନ୍ଦନ କରି କପାଳରେ ମାରିଥିଲେ । ବିରୋଧୀ ଦଳର ନେତା ହୋଇ ବି ତାଙ୍କ ପାଇଁ ଶାସକ ଦଳର ଲୁହ ଝରିଥିଲା । ଆଜି ସେ ନାହାନ୍ତି ବୋଲି କହି ହେବନାହିଁ । କାରଣ ଓଡ଼ିଶାର ମାଟିରେ ତାଙ୍କର ଅମଳିନ ପାଦ ଚିହ୍ନଟିକ ଅମର ସ୍ମୃତି ହୋଇ ରହିଛି । ତା'ଛଡ଼ା ଲୋକ ମୁଖରେ ସେ' ସବୁଦିନ ପାଇଁ ଉତ୍କଳ କେଶରୀ ହୋଇ ରହିଛନ୍ତି ।

—○—